# ଝୁଲୁପାଇଁ ଗୀତଟିଏ

ଦାଶ ବେନହୁର

ସନ୍ତୋଷ
ପବ୍ଲିକେଶନ୍ସ
କାଞ୍ଚନ, ଗଜପତିନଗର, ସୂତାହାଟ, କଟକ-୭୫୩୦୦୧

ଝୁଲୁପାଇଁ ଗୀତଟିଏ
(ପିଲାଙ୍କପାଇଁ ଗୀତ)
ଲେଖକ : ଦାଶ ବେନହୁର
ସ୍ୱତ୍ୱ : ଜିତେନ୍ଦ୍ର ନାରାୟଣ ଦାଶ
୧୬୧ କଥାକାର, ଶୈଳଶ୍ରୀ ବିହାର, ଭୁବନେଶ୍ୱର - ୭୫୧୦୨୧
ପ୍ରକାଶକ : ସନ୍ତୋଷ ପବ୍ଲିକେଶନ୍ସ
କାଞ୍ଚନ, ଗଜପତି ନଗର, ସୂତାହାଟ, କଟକ - ୭୫୩୦୦୧
ମୁଦ୍ରଣ : ସତ୍ୟଭାମା ଓ୍ୱେବ୍ ଅଫ୍‌ସେଟ୍
ଚହଟା ନଗର, ଅଭିନବ ବିଡ଼ାନାସୀ, କଟକ - ୭୫୩୦୧୪
ପ୍ରଚ୍ଛଦ ଓ ଅଳଙ୍କରଣ : ଚିତ୍ରଦେବ
ପ୍ରଥମ ପ୍ରକାଶନ : ଅଗଷ୍ଟ-୨୦୧୪
ମୂଲ୍ୟ : ତିରିଶ ଟଙ୍କା ମାତ୍ର

ବହି ପଢ଼ିବା ଗୋଟେ ବଢ଼ିଆ କାମ । ଗପ ପଢ଼ିବାକୁ ଯେମିତି ଭଲ ଲାଗେ, ଶୁଣିବାକୁ ବି ସେମିତି ଭଲ ଲାଗେ । ହେଲେ, ଗପ ଯେତେବେଳେ ଗୀତରେ ଗୀତରେ ଚାଲେ, ତାହା ପଢ଼ିବାକୁ ଓ ଶୁଣିବାକୁ ଆହୁରି ମଜା ଲାଗେ । ସେଇ ମଜା ଉଠେଇବା କଥାକୁ ମନରେ ରଖି 'ଝୁଲୁପାଇଁ ଗୀତଟିଏ' ବହିଟି ରଚନା କରାଯାଇଛି ।

ଏ ଗୀତଟି ପ୍ରକୃତରେ କଥାଟିଏ । ଆମ ଓଡ଼ିଆ ପୁରାଣମାନଙ୍କରେ ସେମିତି କେତେ ନା କେତେ କଥା, ଗୀତରେ ଲେଖା ହୋଇରହିଛି ।

'ଝୁଲୁ' ପୁରୀ ସହରର ଗୋଟିଏ ପିଲା । ଏ ବିଷୟଟି ତା' ଜୀବନର ଏକ ସତ ଘଟନା ।

# ଉପହାର

ବହି ପଢ଼ିବାକୁ ଭଲ ପାଉଥିବା
ସବୁ ପିଲାଙ୍କ ପଦ୍ମାମନପାଇଁ ।

ଦାଶ ବେନହୁର



ଝୁଲୁ ଆମର ବଡ଼ ଗୁଣର
ତା' ପରି କିଏ କାହିଁ,
ସବୁରି ସାଥେ ଆଦର ଭାବ
କଳି ଝଗଡ଼ା ନାହିଁ,
ପାଠଶାଠରେ ଆଗେ;
କାହାର କିଛି ହୋଇଲେ ଊଣା
ମନେ ତା' ଦୟା ଜାଗେ ।୧।



ପୁରୀ ସହର        ବଡ଼ ଦାଣ୍ଡରେ

ଟାଉନ୍ ଥାନା ଡେଇଁ,

ବାଆଁ ପଟକୁ        ଗଳିରେ ଗଲେ

ପାଇବ ନାଳ ଠେଇଁ,

ସେଇ ନାଳର କଡ଼େ;

ଇସ୍କୁଲ ହତା        ଆର ପଟକୁ

ଚାଳ ଘରଟେ ପଡ଼େ ।୨।



ଘର ଆଗରେ ବଡ଼ ବାରଣ୍ଡା
ଝରକା ଚାରି ଚାରି,
ପାଞ୍ଚ ହାତିଆ ପଥର ଖୁଣ୍ଟ
ମଜଭୁତିଆ ଭାରି,
ଖୋଲା ପବନ ବହେ;
ବାପା ଓ ବୋଉ ଭଉଣୀ ସାଥେ
ଝୁଲୁ ସେଇଠି ରହେ ।୩।

ଇସ୍କୁଲ ପରେ ଘରକୁ ଫେରି
ସାଇକେଲଟି ଧରି,
ବୁଲିବାପାଇଁ ବାହାରେ ଝୁଲୁ
ମନ ହରଷ କରି,
ବେଳେବେଳେ ସେ ଯାଇ;
କାହାଣୀ ବହି ଆଣଇ କିଣି
ନିଜେ ପଢ଼ିବାପାଇଁ ।୪।





ଗୋଟିଏ ବୋଲି ପୁଅ ବୋଲିକା
ଯେତେବେଳେ ସେ ଯାହା,
ମାଗି ବସିଲେ ବାପା କି ବୋଉ
ଆଣି ଦିଅନ୍ତି ତାହା,
ତଥାପି ତା'ର ମନ;
ଆହୁରି ବହି ପଢ଼ିବା ପାଇଁ
ହୁଏ ସେ ଛନଛନ ।୫।

ଏକଦା ଦିନେ ସାଇକେଲରେ
ଗଲା ସେ ବହି କିଣି,
ରେଳ ଷ୍ଟେସନ୍ ପାଶେ ଦେଖିଲା
ବାପା ମାଆ ପୁଅ ତିନି,
ଥିଲା ଘରର ଲୋକ;
ମୁହଁଟି ମାନ ଯାଇଛି ଶୁଖି
ପେଟରେ ଅଛି ଭୋକ ।୬।





ଛୋଟ ପୁଅଟି କାନ୍ଦୁଛି ବସି
ପାଖରେ ବାପା ମାଆ,
ପେଡ଼ି ପୁଟୁଳା କିଛି ବି ନାହିଁ
ନାହିଁ ତାଙ୍କର ଠାଆ,
ଝୁଲୁକୁ ଦେଖିପାରି;
କଅଣ ଭାବି ଭଦରଲୋକ
ଡାକିଲେ ହାତ ଠାରି ।୭।



କହିଲେ ବାବୁ ଅଜଣା ଆମେ
ଦୂର ସହରେ ଘର,
ପୁରୀ ବୁଲିବା ପାଇଁ କି ଆସି
ହେଲୁଣି ହରବର,
ଜିନିଷପାତି ଟଙ୍କା;
ସବୁ ଆମର ଯାଇଛି ଚୋରି
କରମ ଆମ ବଙ୍କା ।୮।



କେବଳ ଏହି ଦାମୀ ଘଡ଼ିଟି
ପାଖରେ ଅଛି ରହି,
କେଉଁଠି ଏହା ବିକି ପାରିବୁ
ଆମକୁ ଦିଅ କହି,
ମିଳିବ ଏଥୁଁ ଯାହା;
ଟିକେଟ୍ କିଣି ଫେରିବୁ ଘରେ
ଖାଇବୁ ଯାହା ତାହା ।୯।



ଭାବିଲା ଝୁଲୁ ମନକୁ ମନ
କଅଣ ଏବେ କଲେ,
ଏ ତିନି ଜଣ ଫେରିବେ ଘରେ
ସପରିବାର ଭଲେ,
ଘଡ଼ି କିଣିବାପାଇଁ;
କାହାକୁ ଅବା କହିବ ସିଏ
କେଉଁ ଆଡ଼କୁ ଯାଇଁ ।୧୦।





ମନେ ପଡ଼ିଲା ବୋଉର କଥା
କହିଲା ଆସ ଯିବା,
ବାପାଙ୍କୁ ଆମ କହିବା ସବୁ
ଏଇ କଥାଟା କିବା,
ନ ରଖ ମନେ ଡର;
ପୁଅକୁ ତୁମ ସାଥିରେ ଆଣ
ପାଖରେ ଆମ ଘର ।୧୧।

ଆମରି ଘରେ  ଖାଇବ ଯାହା
ପଛକୁ ଯିବ ଚାଲି,
ଆଜି ରାତିରେ  ଗାଡ଼ି ଚଢ଼ିଲେ
ପହଞ୍ଚି ଯିବ କାଲି,
ରେଳ ଟିକେଟ୍‌ପାଇଁ;
ଟଙ୍କା କଥାଟା  ବୁଝିବେ ବାପା
କହିଲେ ତାଙ୍କୁ ଯାଇଁ ।୧୨।





ଘରକୁ ଯାଇ ବୋଉକୁ ଝୁଲୁ
କହିଲା ସବୁ ସତ,
ଯାତିରୀ ଜଣେ କେମିତି ଆସି
ହେଲେଣି ହରକତ,
ସାଥିରେ ଛୋଟ ପୁଅ;
ସକାଳୁ ବୋଧେ ଖାଇନି ସିଏ
କାନ୍ଦେ ବୁହାଇ ଲୁହ ।୧୩।

ଶୁଣିଲେ ବାପା ଶୁଣିଲେ ବୋଉ
ଜାଣିଲେ ସବୁ କଥା,
ବୁଝିପାରିଲେ ତାଙ୍କରି ଦୁଃଖ
ମନ ଗହିର ବ୍ୟଥା,
ଦେଲେ ଅଭୟବାଣୀ;
କହିଲେ ଆଗେ ଦି'ମୁଠା ଖାଅ
ପେଟରେ ପଡୁ ପାଣି ।୧୪।





ତା'ପରେ ବୋଉ ପଇସା ଘଡ଼ି
ଭାଙ୍ଗି କହିଲେ ନିଅ,
ତିନିଜଣଙ୍କ ଲାଗି ସଅଳ
ଟିକେଟ୍ କିଣି ଦିଅ,
ସେଇଠୁ ବାପା ଯାଇ;
ରେଳ ଟିକେଟ୍ ଆଣିଲେ କିଣି
ପଇସାତକ ପାଇ ।୧୫।



ଯାତିରୀ ଦୁଇ ସ୍ୱାମୀ ଓ ସ୍ତିରୀ
ଗାଡ଼ିରେ ଯିବାପାଇଁ,
ବିଦାୟ ବେଳେ କହିଲେ କାନ୍ଦି
ଝୁଲୁ ମୁହଁକୁ ଚାହିଁ,
"ତୁମପାଇଁ କି ସିନା;
କି ହୋଇଥା'ନ୍ତା ନ ହେଲେ ଆଜି
ତୁମ ସାହାଯ୍ୟ ବିନା" ।୧୬।



"ବାପା ମାଆ ତୁମ  କେତେ ଯେ ଭଲ
ତୁଳନା ନାହିଁ ତା'ର,
ଜୀବନ ସାରା  ତାଙ୍କରି କଥା
ରହିବ ପଡ଼ି ଗାର,
ଭଲ ମଣିଷ ହୁଅ;
ହୋଇବୁ ଖୁସି  ତୁମ ପରିକା
ହୋଇଲେ ଆମ ପୁଅ ।" ୧୭।





ଅଳପ ଦିନେ ଭଦରଲୋକ
ମନି ଅର୍ଡର୍ କରି,
ଫେରାଇ ଟଙ୍କା ଲେଖିଲେ ଚିଠି
କୃତଜ୍ଞତାରେ ଭରି,
"ଆମକୁ ଦେବ କ୍ଷମା;
ସୁଧ ମୁଁ ସିନା ଫେରାଉ ଅଛି
ମୂଳ ରହିଲା ଜମା ।"୧୮।

"ଜୀବନ ସାରା ଆଦର୍ଶ ହୋଇ
ପୁରୀର ସେଇ ଘର,
ସେ ପରି ଥାଉ ସବୁରିପାଇଁ
ନ ହେଉ କେବେ ପର,
ସବୁ ବିପଦ ବେଳେ;
ଝୁଲୁ ପରିକା ପିଲାଟେ ସଦା
ଆମକୁ ମିଳୁ ହେଲେ ।" ୧୯।





ଚିଠିଟି ପଢ଼ି ଚାହିଁଲେ ବାପା
ଝୁଲୁ ମୁହଁକୁ ଥରେ,
ବୁଲାଇ ଦେଲେ ମୁଣ୍ଡରେ ହାତ
ଅତି ସେନେହ ଭରେ,
କହିଲେ ଝୁଲୁ ଆମ;
ପରୋପକାର ପାଇଁକି ନିଷ୍ଠେ
ରଖିବ ନିଜ ନାମ ।୨୦।

